ଶ୍ରୀ ମୋହନସୁନ୍ଦରଦେବ ଗୋସ୍ୱାମୀଙ୍କ
ରଚିତ

# ଶ୍ରୀ ଠୁମ୍ବାଚରଣ



ଶ୍ରୀ ନିମାଇଚନ୍ଦ୍ର ସିଂହଙ୍କ ଦ୍ୱାରା
ପ୍ରଥମବାର ପ୍ରକାଶିତ ।

ମୂଲ୍ୟ ୦ / ଏକଅଣା ମାତ୍ର ।

# ଉପକ୍ରମଣିକା

ଓଡ଼ିଶାର ସଦ୍‌ଗୁଣାଲଂକୃତ ଏବଂ ସୁପରିଚିତ ପ୍ରଭୁପାଦ ଶ୍ରୀ ଶ୍ରୀ ଶ୍ରୀ ମୋହନସୁନ୍ଦର ଦେବ ଗୋସ୍ୱାମୀଙ୍କୁ ସାହିତ୍ୟ ପାଠକବୃନ୍ଦେ ଭଲରୂପେ ଚିହ୍ନି ପାରିଥିବେ, କହିବା ବାହୁଲ୍ୟ ମାତ୍ର, ଯାହାଙ୍କର ଗୀତିନାଟ୍ୟ ଛଟାରେ ଆଜି ସାରା ଓଡ଼ିଶା ମୁଗ୍ଧ ହୋଇଛି, ଯାହା-ଙ୍କର ନାଟକ ପ୍ରତି ଘରେ ଘରେ ଆବାଳ ବୃଦ୍ଧ ବନିତାମାନେ ପାଠକରି ଆନନ୍ଦ ଉପଭୋଗ କରୁଅଛନ୍ତି । ଅଧୀନ ତାହାଙ୍କ ସହିତ କେତେକ ସମ୍ପୃକ୍ତରେ ଆନନ୍ଦ ଉପଭୋଗ କରିଅଛି । ମାତ୍ର ପ୍ରଭୁପାଦ ଶ୍ରୀ ମୋହନସୁନ୍ଦର ଦେବ ଗୋସ୍ୱାମୀଙ୍କ ରଚିତ **ଶ୍ରୀ ଛନ୍ଦାଚରଣ** ନାମା ପୁସ୍ତିକା ଖଣ୍ଡିକ ମୋତେ ଦୟା ପର-ବଶ ହୋଇ ପ୍ରଦାନ କରି ଅଛନ୍ତି ।

ବିନୟାବନତଃ ପ୍ରତି ଏହିପରି ସ୍ନେହ କୃପାଦୃଷ୍ଟି ଚିରକାଳ
ନିମନ୍ତେ ଦୃଢ଼ୀଭୂତ ହେଲେ ଅଧୀନ ଚିର କୃତଜ୍ଞତା
ଲାଭ କରିବ । ଇତି ।

। ମୁ । ଜଗନ୍ନାଥ ବଲ୍ଲଭ ପ୍ରେସ୍
କଟକ

ନିବେଦକ
ଶ୍ରୀ ନିମାଇଚନ୍ଦ୍ର ସିଂହ
ତା ୧୨-୫-୩୪

# ଶ୍ରୀଛନ୍ଦାଚରଣ ।

ଅରକ୍ଷିତର ସର୍ବସ୍ୱ ,
ଅନାଇଁ ଅନାଇଁ ଭାବୁଛ କିସ ହେ,
ଛନ୍ଦାଚରଣ !
ଅଧରାମୃତେ ମୋ ଆଶ ହେ, ଛନ୍ଦାଚରଣ । ୧ ।



ଆଖି ଠାରୁଛ କାହିଁକି,
ଆଭାସ କରି ମୋତେ ପାଇଲକି ହେ,
ଛନ୍ଦାଚରଣ !
ଆଦରେ ନେବାକୁ ଡ଼ାକି ହେ, ଛନ୍ଦାଚରଣ ।୨ ।



ଇଙ୍ଗିତେ ସଙ୍ଗୀତ ଗାଇ,
ଇଷିତେ ବାଇକର ବ୍ରଜ ଗୋଇ ହେ,
ଛନ୍ଦାଚରଣ !
ଇନ୍ଦୁ ପ୍ରେମରସ ଖୋଇ ହେ, ଛନ୍ଦାଚରଣ । ୩ ।



ଈର୍ଷାରେ ଫୁଲୁଅ ବୁକୁ,
ଈଷା ହେଉ ନାହିଁ ତ ବୋଲିବାକୁ ହେ,

ଛନ୍ଦାଚରଣ !

ଈଶ୍ୱର ବୋଲି ତୁମ୍ଭଙ୍କୁ ହେ, ଛନ୍ଦାଚରଣ । ।



ଉଠି ଆସୁ ଆସୁ ନାଅଁ,
ଉପତେ ଗଲି ଦେଇ ଦେଲ ଢାଅଁ ହେ,
ଛନ୍ଦାଚରଣ !
(ଏଡ଼େ) ଉତପାତ ହେଲ କାଅଁ ହେ, ଛନ୍ଦାଚରଣ ।୧।



ଊଣା ଗୁଣଙ୍କ ତୁମ୍ଭର,,
ଉଲଙ୍ଘି କଲ ବରଜ ନାଶ ହେ,
ଛନ୍ଦାଚରଣ !
ଉଡ଼ାଇଲ ନନ୍ଦା ହୁସ ହେ, ଛନ୍ଦାଚରଣ ।୨।



ଋତୁପତି ଋତେ ମାତି,
ଋଷିବେଶ ହୋଇ କାନ୍ଦିଲ ନାତି ହେ,
ଛନ୍ଦାଚରଣ !
ଋଷି ବସିଲେ ଶ୍ରୀମତୀ ହେ, ଛନ୍ଦାଚରଣ ।୩ ।



ଌଟିଲ ଲବଣୀ ବନେ,
ଌତୁ ଌତୁକାଳି ଖେଳିଲ ଭେଳେ ହେ,
ଛନ୍ଦାଚରଣ !
ଌଡ଼ ଗୋପୀଙ୍କ ଗୁହାଳେ ହେ, ଛନ୍ଦାଚରଣ ।୪।



ଏଡ଼କ ସାହସ କଲ,
ଏକୁଡ଼ ଶାଳେ ପୂତନା ମାଇଲ ହେ,
ଛନ୍ଦାଚରଣ !
ଏକଥା କ ହେଲା ଭଲ ହେ, ଛନ୍ଦାଚରଣ । ୯ ।



ଐଶ୍ୱର୍ଯ୍ୟ ଭୂତରେ ମାତ.
ଐଛକେ ଭୁବନେ ହେଲ ଭୂପତ ହେ,
ଛନ୍ଦାଚରଣ !
ଐନ୍ଦ୍ର ରଥର ସାରଥୀ ହେ, ଛନ୍ଦାଚରଣ । ୧୦ ।



ଓଳଗି ରାଧାଙ୍କ ପଦେ,
ଓଠଧର ଯାହା କହୁଛ ପଦେ ହେ,
ଛନ୍ଦାଚରଣ !
ଓହର ରହୁଛ ହୃଦେ ହେ, ଛନ୍ଦାଚରଣ ।୧୧ ।



ଔଦାର୍ଯ୍ୟ ବଡ଼ମା ଖୋଇ,
ଔଷଧ ବୋଲି ଯା ଦେଇଛ ଖୋଇ ହେ,
ଛନ୍ଦାଚରଣ !
ଔଦ୍ଧତ୍ୟ ଗୁଣ ଦେଖାଇ ହେ, ଛନ୍ଦାଚରଣ । ୧୨ ।



ଅଙ୍ଗ ଚକ୍କଣ କାଳିଆ,
ଅନ୍ତରଟି ବଡ଼ ଗୋଳମାଳିଆ ହେ,

ଛନ୍ଦାଚରଣ !
(ଏଢ଼) ଅନ୍ତୁ ସନ୍ତୁ କର କଥାଁ ହେ, ଛନ୍ଦାଚରଣ । ୧୩ ।



ଅଂଢୁଆ ତଢୁଆ ଭାବ,
ଅଳପ ବୟସେ କିଏ ଜାଣିବ ହେ,
ଛନ୍ଦାଚରଣ !
ଅଳ୍ପେ ଯେବେ ନ କହିବ ହେ, ଛନ୍ଦାଚରଣ । ୧୪ ।



କଳା କଞ୍ଜ ଦଳା ମୁଖେ,
କନକାଙ୍ଗୀ କର ତାମ୍ବୁଳ ଲଖେ ହେ,
ଛନ୍ଦାଚରଣ !
କି ସୁନ୍ଦର ଗୃହପାଖେ ହେ, ଛନ୍ଦାଚରଣ । ୧୫



ଖେଟ ଫୁଲଦୋଳେ ବସି,
ଖସିବେଳେ କି ଝୁଲୁଥିଲ ହସି ହେ,
ଛନ୍ଦାଚରଣ !
ଖସିତ ପଡୁଛି ବଂଶୀ ହେ, ଛନ୍ଦାଚରଣ । ୧୬ ।



ଗଉର ଦିଶୁଛି ଅଙ୍ଗ,
ଗୋଳ ଢାଳୁଛି କି ଶ୍ରୀମତୀ ରଙ୍ଗ ହେ,
ଛନ୍ଦାଚରଣ !
ଗ୍ରାସ ଗହନ ଅନଙ୍ଗ ହେ, ଛନ୍ଦାଚରଣ । ୧୭ ।



ଘନ ସୁନ୍ଦର ମୋହନ,
ଘର ଛଡ଼ କପାଁ ବୁଲୁଛ ବନ ହେ,
ଛନ୍ଦାଚରଣ !
ଖାଣ୍ଟି ହୁଏ ମୋର ମନ ହେ, ଛନ୍ଦାଚରଣ ।୧୮।



( ଙ ) ଉଷା କାଳେ କୁଞ୍ଜବନୁ,
ଉଠି ଆସି ଘରେ ଶୋଉଛ କାହ୍ନୁ ହେ,
ଛନ୍ଦାଚରଣ !
ଉଦୟୁ ନୋହୁଣୁ ଭାନୁ ହେ, ଛନ୍ଦାଚରଣ ।୧୯।



ଚତୁର ପଣ ତୁମ୍ଭର,
ଚହଟି ଗଲାଣି ବରଜ ପୁର ହେ,
ଛନ୍ଦାଚରଣ !
ସ୍ନେହ ପୀରତ ସୁନ୍ଦର ହେ, ଛନ୍ଦାଚରଣ ।୨୦।



ଛନ୍ଦ ମୂର୍ତ୍ତି ତବ ଛନ୍ଦ,
ଛଳରେ ନନ୍ଦନ ପାଇଛ ଅନ୍ଧ ହେ,
ଛନ୍ଦାଚରଣ !
ଛଡ଼ାଅ ମୋ ଭବ ବନ୍ଧ ହେ ଛନ୍ଦାଚରଣ ।୨୧।



ଜଗନ୍ନାଥ ନାମ ବନ୍ଧୁ,
ଜଞ୍ଜାଳ ମୋହର ଫେଡ଼ିଲ ନାହିଁ ହେ,

ଛନ୍ଦାଚରଣ !
ଚଢ଼ ପଶୁ ଅଛ ରହ ହେ, ଛନ୍ଦାଚରଣ । ୨୨ ।



ଝୈରୁଛ ନୟନୁ ବାର,
ଝର ଝର ଝର ଝରଣା ପରୁ ହେ,
ଛନ୍ଦାଚରଣ !
ଝୁରି ଝୁରି ଯିବ ସର ହେ, ଛନ୍ଦାଚରଣ । ୨୩ ।



( ଞ ) ନଟବର ବନମାଳୀ,
ନ ଦେଖିବ ଯେବେ ମୋହର ଅଳି ହେ,
ଛନ୍ଦାଚରଣ !
ନ ସହୁ ଦେବଟି ଚାଳ ହେ, ଛନ୍ଦାଚରଣ । ୨୪



ଟାହ ଟହ ହସ କେଣେ,
ଟାହୁଅ ଖୋସିଛ ରସିକ ପଣେ ହେ,
ଛନ୍ଦାଚରଣ !
ଟେହୁଛତ ଏଣେ ତେଣେ ହେ, ଛନ୍ଦାଚରଣ । ୨୫ ।



ଠକ ମାନଙ୍କର ଗୁରୁ,
ଠଉରାଇଛ କି ମହିମା ମେରୁ ହେ,
ଛନ୍ଦାଚରଣ !
ଠକି ଯିବ ଗୋପପୁରୁ ହେ, ଛନ୍ଦାଚରଣ । ୨୬ ।



ତସଅ ମୋତେ କାହ୍ନକ,
ଡକାଇତ ପ଼ର ବୁଲାଇ ଆଖି ହେ,
ଛନ୍ଦାଚରଣ !
ତାଙ୍କବା ଫଳ ଏହ୍ନକ ହେ, ଛନ୍ଦାଚରଣ । ୨୭ ।



ତମାଳଆ ଗୁଣ ଯେତେ,
ତକା ଏକା ବାଜୁଅଛି ଜଗତେ ହେ,
ଛନ୍ଦାଚରଣ !
ତମ ମୁଁ କହିବ କେତେ ହେ, ଛନ୍ଦାଚରଣ । ୨୮ ।



( ଣ ) ଅଇଁଠା ଦେଲା ଶବରୀ,
ଅବଗୃରେ ଶ୍ରୀମୁଖେ ଦେଲ ଭରି ହେ,
ଛନ୍ଦାଚରଣ !
ଅଳପକ ଲୋକ ପରି ହେ, ଛନ୍ଦାଚରଣ । ୨୯ ।



ତରଣୀ ତନୟା ଜଳେ,
ତରଣୀଟି ଧରି ବାହୁଲା ବେଳେ ହେ,
ଛନ୍ଦାଚରଣ !
ତାଙ୍କା ହେଲେ ସକଳେ ହେ, ଛନ୍ଦାଚରଣ । ୩୦ ।



ଥରି କେତେ କରି ଛଟା,
ଥଟାରେ ଲେଖାଇ ପୀରତି ପଟା ହେ,

ଛନ୍ଦାଚରଣ !
ଥାପିଛ ଏ ଦୃଢ଼ ଦୃଷ୍ଠା ହେ, ଛନ୍ଦାଚରଣ । ୩୧ ।



ଦଉଡ଼ ଆସ ହେ ଭେଟିଲେ,
ଦୁଃଖୀଧନ ବନମାଳୀ ମୋ କୋଳେ ହେ,
ଛନ୍ଦାଚରଣ !
ଦେବ ସର ଛେନା କଲେ ହେ, ଛନ୍ଦାଚରଣ । ୩୨ ।



ଧନମାଳୀ ଗଣ୍ଠି ସୁନା,
ଧରମ ବନ୍ଧୁଁ ମୁଁ ପାଇଛି ସିନା ହେ,
ଛନ୍ଦାଚରଣ !
ଧନେ ମୋ ନାହିଁ ବାସନା ହେ, ଛନ୍ଦାଚରଣ । ୩୩ ।



ନକଁର ନିସ୍ୱଶ ହର,
ନମସ୍କାର ପ୍ରଭୁ ଦେନ ମୋହର ହେ,
ଛନ୍ଦାଚରଣ !
ନଉକର ନିଅ କର ହେ, ଛନ୍ଦାଚରଣ । ୩୪ ।



ପାର ନ କର ଗୋବିନ୍ଦ,
ପରମାଶ୍ରିତ ମୁଁ ନ ଜାଣେ ଛନ୍ଦ ହେ,
ଛନ୍ଦାଚରଣ !
ପରମାପ୍ତ ମୋର ମନ୍ଦ ହେ, ଛନ୍ଦାଚରଣ । ୩୫ ।



ଚିନ୍ତାମଣି ମୋର କହ୍ନା,
ଫେଡ଼ିଲ ନାହିଁ ମୋ ହୃଦ ବେଦନା ହେ,
ଛନ୍ଦାଚରଣ !
ଫଣା କପାଳରୁ ସିନା ହେ, ଛନ୍ଦାଚରଣ । ୩୬



ଚିତ୍ରଲୋକ ହେଲ ବୋଲି,
ବାନ୍ଧୁତନ୍ତୁ ମୋତେ ଦେବାରୁ ଠେଲି ହେ,
ଛନ୍ଦାଚରଣ !
ବାହାରେ ପଡ଼ି ରହିଲି ହେ, ଛନ୍ଦାଚରଣ । ୩୭ ।



ଭରସା ମୁଁ କରିଥିଲି,
ଭସାଇବ ବୋଲି ଜାଣି ନ ଥିଲି ହେ,
ଛନ୍ଦାଚରଣ !
ଭବଜଳେ ବୁଡ଼ିମଲି ହେ, ଛନ୍ଦାଚରଣ । ୩୮ ।



ମଧୁସୂଦନ ମାଧବ,
ମରଣକାଳେ କେ ଶରଣ ଦେବ ହେ,
ଛନ୍ଦାଚରଣ !
ମାସ୍ତୁ ଏ କାସ୍ତୁ ଦହିବ ହେ, ଛନ୍ଦାଚରଣ । ୩୯ ।



ଯଜମାନ ବୋଲି ଜାଣି,
ଯମ ଯେତେବେଳେ ନେବଟି ଟାଣି ହେ,

ଛନ୍ଦାଚରଣ !
ଯାଇ କେ ଠେକବ ପାଣି ହେ, ଛନ୍ଦାଚରଣ । ୪୦ ।



ରହ ରହ ମନେ ଭାବଲ,
ରଞ୍ଜିବ ଖଞ୍ଜିବ ତୁଳସୀ ମାଳେ ହେ,
ଛନ୍ଦାଚରଣ !
ରମଣୀଙ୍କ ବକ୍ଷସ୍ଥଳେ ହେ, ଛନ୍ଦାଚରଣ । ୪୧ ।



ଲକ୍ଷଣ ଯାକ ଅଠର,
ଲଠା ପର ଲାଗି ଦିଶେ ସୁନ୍ଦର ହେ,
ଛନ୍ଦାଚରଣ !
ଲଲ ଚରଣେ ତୁମ୍ଭର ହେ, ଛନ୍ଦାଚରଣ । ୪୨ ।



ବଶୀକରଣ ମନ୍ତ୍ରରେ,
ବଂଶୀ ବାଅ ବୃନ୍ଦାବନ ଭିତରେ ହେ,
ଛନ୍ଦାଚରଣ !
ବସି ହସି ଏକାନ୍ତରେ ହେ, ଛନ୍ଦାଚରଣ । ୪୩ ।



ଶତଦଳ ପଦ୍ମନେତ୍ର,
ଶଚୀପତି ଗର୍ବେ ଠେକ ପର୍ବତ ହେ,
ଛନ୍ଦାଚରଣ !
(ତୁମ୍ଭଙ୍କୁ) ଶତକୋଟି ଦଣ୍ଡବତ ହେ, ଛନ୍ଦାଚରଣ । ୪୪ ।



ଷଷ୍ଠବର୍ଷେ ଯଶୋମତୀ,
ଷଷ୍ଠୀ ସେବ ପାଇଲେ ଏ ସମ୍ପତ୍ତି ହେ,
ଛନ୍ଦାଚରଣ !
ଷୋଳକଳାପୂର୍ଣ୍ଣ ମୂର୍ତ୍ତି ହେ, ଛନ୍ଦାଚରଣ । ୪୫



ସପ୍ତଚତ୍ର ବଇଭବ,
ସଦାଧୀନ ଯେବେ ପର ହୋଇବ ହେ,
ଛନ୍ଦାଚରଣ !
ସରବ ଗେଲ ଗରବ ହେ, ଛନ୍ଦାଚରଣ । ୪୬ ।



ହୁଙ୍କାର ଦୁଆର ବୁଲି,
ହା ଗୋବନ୍ଦ ବୋଲି କାନ୍ଦବ ଢୁଲି ହେ,
ଛନ୍ଦାଚରଣ !
ହର ହର ହର ବୋଲି ହେ, ଛନ୍ଦାଚରଣ । ୪୭ ।



କ୍ଷମା ଲଭିବା ଆଶାରେ,
ଷମେ ମୋହନ ଭଣିଲା ଭାଷାରେ ହେ,
ଛନ୍ଦାଚରଣ !
ଷମା ତୋ ଷରୁ ରସାରେ ହେ, ଛନ୍ଦାଚରଣ । ୪୮ ।



କଟକ ଅରୁଣୋଦୟ ପ୍ରେସରେ ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ମୁଦ୍ରିତ ।

